ଯାଜପୁର

# ନଷ୍ଟବତିଗୀତ ଓ କାନ୍ଦ ।



ଶ୍ରୀ ଅକ୍ଷୟ କୁମାର ଘୋଷଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।




Printed by A. K. Ghosh
at Sree Haranath Press,
Cuttack,
1928

ମୂଲ୍ୟ [illegible] ମାତ୍ର          ମୂଲ୍ୟ ୦ ୦୯

ମାଳିଆର

# ନଷ୍ଟବର୍ଷି ଗୀତ ଓ କାନ୍ଦ ।

ଜୟ ନୀଳାଦ୍ରି ବିହାରୀ । ନଶୁଣିଲ ବାରେ ଅମ୍ଭ ଗୁହାରନେ ।
ହେ ଜଗବନ୍ଧୁ । ଦୀନ ହରୁନାହଁ କାନ୍ଦି କାନ୍ଦି । ୧ ।
ମହିମା ଯାର ଅନନ୍ତ । ଋଷି ତପିମାନେ ନ ପାନ୍ତି ଅନ୍ତ ।
ହେ ଦଇତାରି । କାଳବର୍ଷି ହୋଇଅଛି ନିଗାରି । ୨ ।
ବଳକଲେ କାନ୍ଦୁଛୁ ବର୍ଷ । କେତେ ଗ୍ରାମଗ୍ରାମ ଯାଉଛନ୍ତି ଭାସି ।
ହେ ଭାଇମାନେ । ଏବେ ସାହାଯ୍ୟ କୁଅନ୍ତୁ ଆସି । ୩ ।
ନାଲଟେକ ବଜ୍ରାଘାତ । ଶୁଣି ଲୋକେ ହିନେ୍ୟ ହେଲେ ଗହତ ।
ହେ ଭାଇମାନେ । ଧନ୍ୟ ଧନ୍ୟ ପ୍ରଭୁ ଜଗନ୍ନାଥ । ୪ ।
ବିଜୁଳି ବଜ୍ର ପଡ଼ିଲା । ବଡ ଦେଉଳୁ ପଥର ଖସିଲା ହେ ।
ଚକା ଡୋଳା । ନଷ୍ଟବର୍ଷି ବିଷ୍ୟାତ ଘଟିଲା ହେ । ୫ ।
ଅସିଲା ଏ କାଳ ବାଛି । ଗଳାରେ ଲଗାଇ ଦେଲା ଦଉଡି ହେ ।
ଚକାଆଖି । ଭୁଲେ ଥାଉଁ ହେଲୁ ନଶିମାଣି ହେ । ୬ ।
ଏ ଓଡ଼ିଶା ବୀରଭୂଇଁ । ଶୂନ୍ୟ ଶୂନ୍ୟ ଗଲା ମଶାଣି ହୋଇ ହେ ।
ଜଗବନ୍ଧୁ । ଦୀନ ନ ଧରଇ କାନ୍ଦୁ କାନ୍ଦୁ ହେ । ୭ ।
ଥିଲା ସୁନାରାଣୀ ହୋଇ । ପୋଇଲେକି ଏବେ ଯୋଗ୍ୟ ନୁହଇ ହେ ।
ଚକାନନ । କାହିଁ ବସିଛ ହୋଇ ମଉନ ହେ । ୮ ।
ଖଣ୍ଡି ଖଣ୍ଡ ସାଗ୍ରଦନ । ଖାଇବା ପାଇଁକି ନ ମିଳେ ଅନ୍ନ ହେ ।
ଚକ୍ରଧର । ହେଲ ଓଡିଶା ପାଇଁ ନିଷ୍ଠୁର ହେ । ୯ ।
ଗଙ୍ଗା ମାତା କୋପ କଲେ । ନଷ୍ଟିଅର୍ଦ୍ଧେ ସବୁ ଗଡର୍ଭ ଘେଷିଲେ ହେ ।
ପଦ୍ମମୁଖ । ଦୁଃଖ ପରେ ଦେଇ ଗଲେ ଦୁଃଖ ହେ । ୧୦ ।
ସୁବର୍ଣ୍ଣରେଖା ବ୍ରାହ୍ମଣୀ । କଲକି ଖସୁଅ ବଇତରଣୀ ହେ ।
ଦୁଃଖୀଧନ । ମିଳିଗଲେ ନଦୀ ପାଞ୍ଚ ପୁଣି ହେ । ୧୧ ।
ଭଦ୍ରକାଳୀ ବୀରଜାଇ । ଦୁଃଖ ଦେଖିଗଲେ ପଥର ହୋଇ ହେ ।
ଭାଇମାନେ । ଭାସି ମଲେ ନର ନାରୀ ଗଣି ହେ । ୧୨ ।

ରେଳ ହୋଇଲା ଅଚଳ । ଟବେଶ ପାଇଲ ଭାଙ୍ଗିଲା ପୋଲ ହେ ।
ହେ ଭାଇମାନେ । ରେଳ ବନ୍ଦ ହେଲା ଉତକାଳ ହେ । ୧
ପର୍ବତ ପର୍ଯ୍ୟନ୍ତ ଜଳି । ମାତ୍ର ଅଛି ଥଳ ଜଳ ଅଥଳ ହେ ।
ଭାଇମାନେ । ଭାସିଲା ବାଲିଆପାଲ ହେ । ୧୪ ।
ଥଳ କୂଳ ନ ଦିଶେ । ଟେଲିଗ୍ରାମ ତାର ଛିଣ୍ଡାଇ ଦେଲା ହେ ।
ଭାଇମାନେ । ଲୁହା ପୋଲକୁ ଦୂରେ ଫିଙ୍ଗିଲା ହେ । ୧୫ ।
ସର୍ବ ଏକାକାର କଲା । ପ୍ରବଳ ଭାବରେ ନଷ୍ଟ କରିଲା ହେ ।
ଭାଇମାନେ । ରେଳ ଲାଇନକୁ ଭାଙ୍ଗି ଦେଲା ହେ । ୧୬ ।
ଲୁହା ପଥରରେ ଗଢ଼ି । ନେଇଥିଲା ରେଳକୋମ୍ପାନୀ ଗାଡ଼ ହେ ।
ଭାଇମାନେ । ତାକୁ ଭାଙ୍ଗିଲା ଏ ନଈବଢ଼ି ହେ । ୧୭ ।
ପବନର ବୃଦ୍ଧି ହେଲା । କେ କୁଅଟେ ଗଳାଜଣା ନୋହିଲା ହେ ।
ଭାଇମାନେ । ଘୋର ଜଙ୍ଗଲେ ପାଣି ପଶିଲା ହେ । ୧୮ ।
ବଡ ବଡ଼ ବାଘ ହାତୀ । ଭାଲୁ ସମ୍ବର ମର ଭାସନ୍ତି ହେ ।
ଭାଇମାନେ । ଲୋକେ ଖଣ୍ଡ ପ୍ରଳୟ କହନ୍ତି ହେ । ୧୯ ।
ବଡ଼ ବଡ଼ି ବୃକ୍ଷମାନ । ଉପୁଡ଼ି କରିଲେ ଗଙ୍ଗା ସ୍ନାହାନ ହେ ।
ଭାଇମାନେ । ଗୃହଁ ଚକତ ହୋଇଲା ପ୍ରାଣ । ୨୦ ।
ଭାସି ଆସେ ଅଜଗର । ପୂଚ୍ଛ କର ଉଚ୍ଚେ ତାହାର ସ୍ୱର ହେ ।
ଭାଇମାନେ । ହବେ ପ୍ରାଣ ଆକୁଳେ ଅସ୍ଥିର ହେ । ୨୧ ।
ଯାଏ ଘରଚାଳ ଭାସି । ତା ଉପରେ ଲୋକେ ଡାକନ୍ତି ବସି ହେ ।
ଭାଇମାନେ । ଆମ୍ଭ ଭାସିଗଲୁଁ ରଖ ଅସି ହେ । ୨୨ ।
ବୁଝେ କେ କାହା ଖବର । ଯେଝା ପ୍ରାଣ ତାକୁ ଅଟେ ଅସ୍ଥିର ହେ ।
ଭାଇମାନେ । କେହି କାନ୍ଦନ୍ତି ଆକୁଳସ୍ୱର ହେ । ୨୩ ।
ନିଦ୍ରାଦେବୀ କାହିଁ ଥିଲେ । ମରଣ ନିକଟେ ପହଁଞ୍ଚି ଗଲେ ହେ ।
ଭାଇମାନେ । ଲୋକେ କଲବଲ ହୋଇ ମଲେ ହେ । ୨୪ ।
ଶ୍ରାବଣ ତେର ଦିନରେ । ମାଡ଼ିଲେ ବଢ଼ି ଅତି ପ୍ରଖରେ ହେ ।
ଭାଇମାନେ । ପଶି ହିଦହିଶ ଯାଜପୁରରେ ହେ । ୨୫ ।

ଭାଙ୍ଗି ପକାଇଲା ଘର । ଯନ୍ତ୍ର ପଡ଼ିଗଣ୍ଡ ଭୀଷଣାକାରେ ହେ ।
ଭାଇମାନେ । ଷଡ଼ଙ୍ଗନଦୀ କଲେ ଧରଚର ହେ । ୨୬ ।
ସୁବର୍ଣ୍ଣରେଖା ବ୍ରାହ୍ମଣୀ । ଖରସୁଅ ବଳଙ୍ଗ ବଇତରଣୀ ହେ ।
ଭାଇମାନେ । ମଣି ତେବା ନଦୀ ତହିଁ ପୁଣି ହେ । ୨୭ ।
କି ଦୁର୍ଯୋଗେ ହେଲା ବଢ଼ି । ପଞ୍ଚାଳ ଭାଙ୍ଗନ୍ତୁ ଯାଇଛନ୍ତି ହେ ।
ଭାଇମାନେ । ତାଙ୍କୁ ଷଡ଼ଙ୍ଗନଦୀ ଦେଲେ ଗଢ଼ି ହେ । ୨୮ ।
କେନ୍ଦୁଝର ଆନନ୍ଦପୁର । ଭସାଇଲା ନଦୀ ଘର ଦୁଆର ହେ ।
ଭାଇମାନେ । ଅଧ ଅନ୍ନ ନ ମିଳିଲା ତାର ହେ । ୨୯ ।
ଧର ଧର କେହି ଡାକେ । ମଲି ବୋଲି କେହୁ ଡାକେ ଆତଙ୍କେ ହେ
ଭାଇମାନେ । କେହୁ ଜଳେ କାନ୍ଦୁଥାନ୍ତି ଦୁଃଖେ ହେ । ୩୦ ।
କେତେ ସ୍ରୋତେ ଭାସିଗଲେ । ଗାଈର ଲାଙ୍ଗୁଡ଼ ଧରି ତରିଲେ ହେ ।
ଭାଇମାନେ । କେତେ ବୃକ୍ଷକୁ ଧରି ବଞ୍ଚିଲେ ହେ । ୩୧ ।
କେ କହଇ ଅସମାତ । କେଣିକି ଯିବାକୁ ନ ଦିଶେ ପଥ ଗୋ ।
ମାଆ ମୋର । ନଷ୍ଟେ ମରଣ ହେଲା ଆମ୍ଭର ଗୋ । ୩୨ ।
ଅଣ୍ଟେ ଏ ହୋଇଛି ଜଳ । ଦମ୍ଭ ଚାନ୍ଦ ଛାଡ଼ା ହୁଅ ଏଠାରୁ ଗୋ ।
ମାଆ ମୋର । ନଷ୍ଟେ ପ୍ରଭୁ କରିବେ ଉଦ୍ଧାର ଗୋ । ୩୩ ।
କେ କହଇ ଏହିଠାରେଁ । ଭାଇ କଥା କହୁ ଦିଶିଲା ନାହିଁ ହେ ।
ସାଧୁଜନେ । କେହୁ କାନ୍ଦନ୍ତି ବିକଳ ହୋଇ ହେ । ୩୪ ।
କେ କହଇ ଗୋରୁ ନାହିଁ । କେ କହଇ ଝିଅ ମିଳୁନାହିଁ ହେ ।
ସାଧୁଜନେ । କେହୁ କହଇ ଗୃହ ପଳାଇ ହେ । ୩୫ ।
ହଜାର ହଜାର ଲୋକ । ଘେରୁ ବୁନ୍ଦ ଉଛନ୍ତି ଲୋତକ ହେ ।
ଭାଇମାନେ । ତାଙ୍କୁ ବିଧାତା ଦେଲା ଏ ଦୁଃଖ ହେ । ୩୬ ।
ପୁଣି ଲୋକ ଗୃହ ଲକ୍ଷ । ଅନ୍ନ ବିନା ଅଣ୍ଡା କଲେ ପ୍ରତ୍ୟକ୍ଷ ହେ ।
ଭାଇମାନେ । ତାଙ୍କୁ ସହାୟ ଏକା ଶ୍ରୀମୁଖ ହେ । ୩୭ ।
ନଈବଢ଼ି ଭୟଙ୍କର । ପେଟିକି ଗୃହଁଲେ ତେଣେ ଅଧାର ହେ ।
ଭାଇମାନେ । କଲା ବିଧାତା କୂଟ ବିଗ୍ରହ ହେ । ୩୮ ।

ଏକେ ସ୍ତ୍ରୈଣ ତପେ ଗୃହେ । କାନ୍ଦି କାନ୍ଦି ଯାଉଥିଲା ବିକଳେ ହେ ।
ଭାଇମାନେ । ତାର ପ୍ରସବ ହେଲା କ୍ରୁମରେ ହେ । ୩୯ ।
ଅଠଳରେ ଲୁସି ଯାଇ । ଗୃହବାନ କଲା ଉପାୟ ସେହୁ ହେ ।
ଭାଇମାନେ । ନୌକେ ଉଦ୍ଧାରିଲେ ନାବ ନେଇ ହେ ।୪୦।
ନନମିଥିବା କ୍ଷମର । ଗୃହବନେ ନାଉ ଛେଦଲେ ତାର ହେ ।
ଭାଇମାନେ । ଦେଖ ଇଶ୍ୱର କୃତ ବିଗ୍ରହ ହେ । ୪୧ ।
ଦକ୍ଷିଣ ଓଡ଼ିଆ ଭାଇ । ତାଙ୍କ କଷ୍ଟ ଦେଖି କାନ୍ଦମାହନ୍ତି ହେ ।
ଭାଇମାନେ । କଏ ପାରିବ ଧୈର୍ଯ୍ୟ ବାନ୍ଧି ହେ । ୪୨ ।
ଦେଖନା କୃଷ୍ଣ ପାସ୍ତ୍ରଲା । ଟେନ୍ଟଲ ପଟର ଉଦ୍ଧାର ହେଲା ହେ ।
ଭାଇମାନେ । ବୃକ୍ଷେ ବାନର ଯୋଗ ଲିହ୍ନଲା ହେ । ୪୩ ।
ବାଲେଶ୍ୱରେ ପଶ୍ଚିମାଲେ । ଧୋଇ ଅଛି ନଦୀ ଅନେକ ସ୍ଥଳ ହେ ।
ଭାଇମାନେ । ଲୋକେ ହେଉଅଛନ୍ତି ଆକୁଳ ହେ । ୪୪ ।
ଭାଙ୍ଗିଲା ଘର ଦୁଆର । ଭାସିଲା ବାଲି ବୋଡ଼ଦପୁର ହେ ।
ସାଧୁମାନେ । ନଈ ବଢ଼ିଲା ସାଇ ଅଥର ହେ । ୪୫ ।
ଗୋରୁ ମହିଷ ହଜାର । ମରିଗଲେ ଏହି ନଈବଢ଼ିରେ ହେ ।
ସାଧୁଜନେ । ଲେଖା ନ ରହିଲା କାହାର ହେ । ୪୬ ।
ଙ୍ଗ୍ରେଜ ଅଦ୍ଭୁତ ଧନ୍ୟ । ଲିଖ ଲିଖ କହ୍ନା ବୁଲି ଚ କର ହେ ।
ସାଧୁଜନେ । ଗଙ୍ଗା ମାତା ଭକ୍ଷିଲେ ସବୁର ହେ । ୪୭ ।
ଧନ ରତ୍ନ ଅଳଙ୍କାର । ହୋଇଅଛି ଅଙ୍ଗ ଛାରଖାର ହେ ।
ସାଧୁଜନେ । ଗଙ୍ଗାମାତାଙ୍କର ଉଦରର ହେ । ୪୮ ।
ଯେତେ ଦିନ ଜୀବ ଥିବ । ସବୁଙ୍କ ଏ କଥା ପାଶୋର ହେବ ହେ
ଭାଇମାନେ । ଅବଶ୍ୟ ତାହା ମନେ ପଡ଼ିବ ହେ । ୪୯ ।
ହଳ ବାଡ଼ି ଖେତ ମଲା । ଅମାରର ଧାନ ସବୁ ସଢ଼ିଲା ହେ ।
ସାଧୁଜନେ । ନଈବଢ଼ି ଉକାଶି ରଚିଲା ହେ । ୫୦ ।
ସାଧୁମାନେ ପଢ଼ିବେରନ୍ତୁ । ଜୀବନ ବିକଳେ ଅଶ୍ରୁ ଢାଳନ୍ତୁ ହେ ।
ସାଧୁଜନେ । ଯାଇଁ ବୁଦା କୁଦାରେ ଲୁଚନ୍ତୁ ହେ । ୫୧ ।

କଲଟର କମଶନ । ଧୋଇ ଦେଖି ହେଲେ କାତର ମନ ହେ ।
ସାଧୁଜନେ । ହେଲେ ନମ୍ରଳ ଗରବ ନାଶ ହେ । ୫୨ ।
ବସ୍ତା ପାଲିଅପାଳରେ । କେତେ ଭାସିଗଲେ ନଈ ସୁଅରେ ହେ ।
ସାଧୁଜନେ । ଜଲ ପଶିଲା ଜଲେଶ୍ୱରରେ ହେ । ୫୩ ।
କଏ ସେ ରହିଲେ କାହିଁ । ପଚ୍ଚିକୁ ଲୋକୃଷ୍ଟି ଶାନ୍ଧିଲେ ନାହିଁ ହେ ।
ସାଧୁଜନେ । ଗଲେ ଯେଷ୍ଠା ପ୍ରାଣ ଯିଏ ନେଇ ହେ । ୫୪ ।
ଦୁଃଖରେ ସବୁ ବିକଲ । କରୁଥିଲେ ସୁଖେ ଘର ସକଳ ହେ ।
ସାଧୁଜନେ । ତାଙ୍କୁ ବଢ଼ି କଲା କଲବଲ ହେ । ୫୫ ।
ଦାଂଲିଯ ଟଙ୍କା ଛାଡ଼ି । ସମାଜ ପ୍ରକାଶ କରୁଅଛନ୍ତି ହେ ।
ସାଧୁଜନେ । ଅନ୍ଦାଜରେ ଯିବା କହୁଛନ୍ତି ହେ । ୫୬ ।
ଘୋଡା କେତେ କାହିଁଥିଲା । କଏ ଅବା ଅପ୍ରେ ଜାଣିବ ଭଲି ହେ ।
ସାଧୁଜନେ । ଯାହା ଦେବଙ୍କୁ ଦୁର୍ଲ୍ଲଭ ହେଲା ହେ । ୫୭ ।
[redacted]ାତଥର ହୋନ୍ତା ପୋତ । ଥରେ ନୋହୁଥାନ୍ତା ଏପର ବଢ଼ି ହେ ।
ଭାଇମାନେ । ଏହା ଅଟେ ବିଧାତା ଦଉଡ଼ ହେ । ୫୮ ।
ଯାହା ସ୍ୱପନେ ନ ଥିଲା । ପୋତା କଟମାରୁ ଅପେ ଘଟିଲା ହେ ।
ଭାଇମାନେ । ଏବେ କାଳିତ ଅକାଳ ହେଲା ହେ । ୫୯ ।
ଭାସିଲା ଧାମନଗର । ଭାଙ୍ଗି ଦେଲା ବଢ଼ି ସବୁର ଘର ହେ ।
ଭାଇମାନେ । ଦେଖି ନୟନ ବହଇ ନୀର ହେ । ୬୦ ।
ହରପୁର ଇନ୍ଦ୍ରାପୁର । ଧୋଇଅଛି ବଢ଼ି ସବୁର ଘର ହେ ।
ଭାଇମାନେ । ଲୋକେ କରୁଛନ୍ତି ହାହାକାର ହେ । ୬୧ ।
ବାଞ୍ଛାରପୁର ନିକଟ । ନଈବଢ଼ି ଦେଇଅଛି ସଙ୍କଟ ହେ ।
ଭାଇମାନେ । ଲୋକେ ହେଉଛନ୍ତି ଛାରପଟ । ୬୨ ।
ଯାଡବର୍ଷ ନୂଆ ଭାସି । କାନ୍ଦଇ ବିକଳେ ଶୂଳରେ ବସି ହେ ।
ଭାଇମାନେ । ମେ ତେ ଜୀବାଇ ନେ ଥିଲା ଅସ ହେ । ୬୩ ।
ଗଡ଼ର ତୁଳସୀପୁର । ଭାସିଯାଇ ପଶ୍ଚିମ ହେଉଛି ନୀର ହେ ।
ଭାଇମାନେ । ସବୁ କରିଦେଲା ଛାରଖାର ହେ । ୬୪ ।

ଅନ୍ତରେ ପଶିଲା ଜଳ । ହେଡ଼ାରଙ୍କି ବନ୍ଧ ଭାଙ୍ଗି ଗଥିଲେ ହେ ।
ଭାଇମାନେ । କେତେକେ ହୋଇଲେ ଅତି ବିକଳ ହେ ।୬୫।
ଓଡ଼ିଶାର ବନ୍ଧୁଜନେ । ସାହାଯ୍ୟ କରନ୍ତୁ ଅନ୍ନ ବସନେ ହେ ।
ଭାଇମାନେ । ତାଙ୍କ କଲ୍ୟାଣ ବାଞ୍ଛନ୍ତୁ ମନେ ହେ । ୬୬ ।
ଛନ୍ଦ ତନ୍ଦ ଘାଇ ଭାଙ୍ଗି । ଚୂର କଲା ଲୁହା ପଥର ପାଞ୍ଜି ହେ ।
ଭାଇମାନେ । ବାଟ ଅବାଟ ହୋଇଛି ଅଙ୍କ ହେ । ୬୭ ।
ବାଟଘାଟ ଅଘାଟ ହେଲା । ଭୂଠ ମଠ ଭାଙ୍ଗି କେତେ ପଡ଼ିଲା ହେ ।
ଯାତ୍ରୀଜନେ । ଏବେ ଉତ୍କଳ ମହତ ଗଲା ହେ । ୬୮ ।
କାହିଁଗଲା ସେଦିନ । ଦେଉଅଛୁଁ ଆଜି କି ହୀନମାନ ହେ ।
ଭାଇମାନେ । ଏବେ ହେଲୁଣି ଅତି ଉଚ୍ଛନ୍ନ ହେ । ୬୯ ।
ଏ ଓଡ଼ିଶା ଗାଦିଭୂଇଁ । ପଞ୍ଚାକ୍ଷରୀ ଜପ ସଦା କରଇ ହେ ।
ଭାଇମାନେ । ରାଜା ସବୁ ଗଲେ ଅଜା ହୋଇ ହେ । ୭୦ ।
ଉତ୍କଳେ ବଂଶଗୁରୁ । ଢାଲ ଯାଇଥିଲା ବଗଡ ହୋଇ ହେ ।
ଭାଇମାନେ । ଜାଣିଥିଲୁଁ ସବୁ ଯୋଡ଼ ଯାଇଁ ହେ । ୭୧ ।
ଏବେ ନଦୀ ହେଲା ସିଲି । କୂଳ ଲଙ୍ଘିଲା ସେ କେତେମାତର ହେ
ଭାଇମାନେ । ଧୀରେ ଧାଅ ଶାନ୍ତିରୁ ପଦ୍ମର ହେ । ୭୨ ।
କାହିଁ ଗଲ ଏ କଥା । ଶୁଣିକରି କରି ଏହା ଦାନବସ୍ଥା ହେ ।
କହୁଥାଇ । ଭୂମ୍ବ ବନ୍ଧୁ ହେ ଅନ୍ଧ ରଖନ୍ତା ହେ । ୭୩ ।
ଜଳନାଶ ପଡାଇଲେ । ସାକେ ନଈବନ୍ଧ ହେଲା ପ୍ରବେଶ ହେ ।
ଭାଇମାନେ । ଆଜି କରୁଅଛୁ ସର୍ବନାଶ ହେ । ୭୪ ।
ଅଷାଢ଼େ ଗୁଣ୍ଡିଚାଯାତ । ଅଦିନରେ ଦନେ ଚଳବ ରଥ ହେ ।
ଭାଇମାନେ । ଏହା ବାଜା ଶୁଣିଲା ଜଗତ । ୭୫ ।
ଭ୍ରାନ୍ତ ଜଗଡ଼ା ହର । ମାପ୍ତୁ ଅରମ୍ଭିଲେ ଚତ୍ର ବଗ୍ରୂର ।
ହେ ଭାଇମାନେ । ନଈବନ୍ଧ ହୋଇଲା ଉଗାର ।୭୬।
ଅକିଞ୍ଚନ ବାଳୁତହୀନ । କଳ୍ପତରୁ ଗୀତେ କଲେ ରଚନ ହେ ।
ଭାଇମାନେ । ନଈବନ୍ଧ ଗୀତ ହୋଇଲା ସମ୍ପୂର୍ଣ୍ଣ ହେ ।୭୭ ।

